ଆଧୁନିକ ଓଡ଼ିଆ ଭାଷାର ଜନକ

# କଥା ସମ୍ରାଟ ଫକୀରମୋହନ ସେନାପତି



ଡକ୍ଟର ପ୍ରହ୍ଲାଦ ଚରଣ ମହାନ୍ତି

ଅବସରପ୍ରାପ୍ତ ଓଡ଼ିଆ ପ୍ରାଧ୍ୟାପକ,
ସମ୍ପାଦକ, ବିଶ୍ୱବିଦ୍ୟାଳୟ କ୍ରିୟାନୁଷ୍ଠାନ କମିଟି ଓ
ଯୁଗ୍ମ ସମ୍ପାଦକ, ବାଲେଶ୍ୱର ଶିକ୍ଷା ପରିଷଦ୍ ।

ବାଲେଶ୍ୱର ଶିକ୍ଷାପରିଷଦ୍ ଆନୁକୂଲ୍ୟରେ
ଶ୍ରୀ ଦୁର୍ଗା ପ୍ରେସ୍

# କଥା ସମ୍ରାଟ ଫକୀର ମୋହନ ସେନାପତି

ଡକ୍ଟର ପ୍ରହ୍ଲାଦ ଚରଣ ମହାନ୍ତି,
ଅବସରପ୍ରାପ୍ତ ପ୍ରାଧ୍ୟାପକ ଓ ବିଭାଗୀୟମୁଖ୍ୟ,
ଓଡିଆ ବିଭାଗ, ଫକୀରମୋହନ ମହାବିଦ୍ୟାଳୟ

ପ୍ରକାଶକ - ଶିକ୍ଷା ପରିଷଦ୍, ବାଲେଶ୍ବର, ମୁଦ୍ରଣ - ଶ୍ରୀ ଦୁର୍ଗା ପ୍ରେସ୍
ମୁଦ୍ରଣକାଳ - ରଜ ସଂକ୍ରାନ୍ତି, ୧୮ ଜୁନ୍ ୧୯୯୫
ମୂଲ୍ୟ - ଟ ୧୫, ଯୋଗାଯୋଗ - ଗୋପାଳଗାଁ, ବାଲେଶ୍ବର -
୭୫୬୦୦୧

# ଗ୍ରନ୍ଥ ସମ୍ବନ୍ଧରେ ପଦେ

ଏହି ପୁସ୍ତକ - ଲେଖାର ପୃଷ୍ଠଭୂମି କୌତୁହଳପ୍ରଦ । କାରଣ ସମୟ ଓ ସୁଯୋଗ ଏତେ ସୀମିତ ଥିଲା ଯେ ମୋ ପକ୍ଷରେ ଏ ପୁସ୍ତକର ପାଣ୍ଡୁଲିପି ପ୍ରସ୍ତୁତ କରି ମୁଦ୍ରଣ କରାଇବା ଅସମ୍ଭବ ମନେ ହେଉଥିଲା । ଓଡିଆ ସୋସାଇଟି ଅଫ୍ ଦି ଆମେରିକାଜ୍ (ଆମେରିକାର ପ୍ରବାସୀ ଓଡିଆ ମାନଙ୍କ ସଂଗଠନ - ଓସା) ର ୨୬ ତମ ବାର୍ଷିକୋତ୍ସବରେ ଅତିଥି ରୂପେ ଯୋଗଦେଇ ଫକୀର ମୋହନ ବିଶ୍ୱବିଦ୍ୟାଳୟ ସ୍ଥାପନ ପାଇଁ କି ଭିତ୍ତିଭୂମି ନିର୍ମାଣ କରିଛୁ, ସେ ବିଷୟରେ ଉକ୍ତ ସଭାରେ ଓ ବଡ ୨ ସହରରେ ପ୍ରବାସୀ ଓଡିଆ ମାନଙ୍କୁ ଜଣେଇବା ନିମନ୍ତେ ସଭାପତି ଡଃ ଶୀତକଣ୍ଠ ଦାଶ ବିଧିବଦ୍ଧ ଭାବେ ନିମନ୍ତ୍ରଣ ପତ୍ର ପଠାଇବା ପରେ ମୁଁ ଏ ପୁସ୍ତକ ଲେଖା ଆରମ୍ଭ କଲି । କାରଣ ଓସାର କର୍ମକର୍ତ୍ତାମାନେ ଶିକ୍ଷା ପରିଷଦକୁ ଜଣାଇଲେ ଯେ ଫକୀରମୋହନ ସେନାପତିଙ୍କ ଜୀବନୀ ଓ କୃତିତ୍ୱ ସମ୍ବନ୍ଧରେ ଏକ ସଂକ୍ଷିପ୍ତ ଆଲୋଚନା ପୁସ୍ତକ ମୁଁ ଲେଖି ପ୍ରବାସୀ ଓଡିଆଙ୍କ ମଧ୍ୟରେ ବିତରଣ କରିବା ଉଚିତ । ଫଳରେ ସେମାନେ ଫକୀର ମୋହନଙ୍କୁ ବିଶଦ୍ ଭାବେ ଜାଣିବା ପାଇଁ ସୁଯୋଗ ପାଇବେ ।

ବାଲେଶ୍ୱର ଶିକ୍ଷାପରିଷଦ କାର୍ଯ୍ୟ ନିର୍ବାହୀ ସମିତିର ସର୍ବସମ୍ମତ ନିଷ୍ପତ୍ତି ଗ୍ରହଣ କରାଯାଇ ସ୍ଥିର ହେଲା ଯେ ମୋ ଲିଖିତ ପୁସ୍ତକର ୧୦୦୦ ଖଣ୍ଡର ପ୍ରକାଶନ ଦାୟିତ୍ୱ ପରିଷଦ ବହନ କରିବେ । ମାତ୍ର ୧୦ ଦିନ ମଧ୍ୟରେ ପୁସ୍ତକ ଲେଖି ହାତରୁ ଛପେଇ ସାଥିରେ ଆମେରିକାକୁ ନେବାପାଇଁ ପ୍ରସ୍ତୁତ କରିଛି । ପ୍ରୁଫ୍ ସଂଶୋଧନ କରିବାକୁ ସମୟ ପାଇ ନାହିଁ । ଫଳରେ ପୁସ୍ତକରେ ବହୁ ବର୍ଣ୍ଣାଶୁଦ୍ଧି ରହି ଯାଇଛି । ତେବେ ଡି.ଟି.ପି. ମୁଦ୍ରଣ ଦ୍ୱାରା କାର୍ଯ୍ୟଟି ତ୍ୱରାନ୍ୱିତ କରିଥିବାରୁ ଶ୍ରୀ ଦୁର୍ଗା ପ୍ରେସ କର୍ତ୍ତୃପକ୍ଷଙ୍କୁ ଆନ୍ତରିକ ସାଧୁବାଦ ଜଣାଉଛି ।

ସଂକ୍ଷେପରେ ବ୍ୟାସକବି ଫକୀରମୋହନ ସେନାପତିଙ୍କ ଜୀବନୀ, ପ୍ରଶାସନିକ ଦକ୍ଷତା ଓ ସାରସ୍ୱତ କୃତିତ୍ୱ ସମ୍ବନ୍ଧରେ ଏଥିରେ ମୁଁ ଆଲୋଚନା କରିଛି । ଆମେରିକା, କାନାଡାର ପ୍ରବାସୀ ଓଡିଆ ବନ୍ଧୁମାନେ ଓ ଓଡିଶାର ପାଠକମାନେ ଏହି ପୁସ୍ତକ ପାଠ କରି ଉପକୃତ ହେଲେ ମୋର ଶ୍ରମ ସାର୍ଥକ ହେବ ।

ରଜ ସଂକ୍ରାନ୍ତି, ୧୯୯୫ ମସିହା ।

ଡକ୍ଟର ପ୍ରହ୍ଲାଦ ଚରଣ ମହାନ୍ତି
ଲେଖକ

## ଆଧୁନିକ ଓଡ଼ିଆ ଭାଷାର ଜନକ

# କଥାସମ୍ରାଟ ଫକୀର ମୋହନ ସେନାପତି

ଡକ୍ଟର ପ୍ରହ୍ଲାଦ ଚରଣ ମହାନ୍ତି

*ଅବସରପ୍ରାପ୍ତ ଓଡ଼ିଆ ପ୍ରାଧ୍ୟାପକ ଓ*

*ବିଭାଗୀୟମୁଖ୍ୟ, ଫକୀର ମୋହନ*

*ମହାବିଦ୍ୟାଳୟ, ବାଲେଶ୍ୱର - ୭୫୬ ୦୦୧*

---

### ଅଲୌକିକ ଜୀବନ :—

ବାଲେଶ୍ୱର ସହରସ୍ଥ ମଲ୍ଲିକାଶ ପୁରରେ ୧୮୪୩ ମସିହା ଜାନୁୟାରୀ ମାସ ସନ ୧୨୫୦ ସାଲ ମକର ସଂକ୍ରାନ୍ତି ଦିନ ପିତା ଲକ୍ଷ୍ମଣ ଚରଣ ସେନାପତିଙ୍କ ଔରସରୁ ମାତା ତୁଳସୀ ଦେଈଙ୍କ ଗର୍ଭରୁ ଫକୀର ମୋହନ ସେନାପତିଙ୍କ ଜନ୍ମ । ଜନ୍ମର ପ୍ରାୟ ୩ ବର୍ଷ ମଧ୍ୟରେ ଫକୀର ମୋହନ ପିତାମାତାଙ୍କୁ ହରାଇ ଥିଲେ । ପିତୃମାତୃହୀନ ଶିଶୁ ଫକୀର ମୋହନ ଲାଳିତ ପାଳିତ ହୋଇଥିଲେ ପିତାମହୀ କୁଚିଲା ଦେଈଙ୍କ ଦ୍ୱାରା । ତାଙ୍କ ପାଇଁ ଭାଗ୍ୟର ଉପହାସ ଥିଲା ଅତି ନିର୍ମମ । ସାତ, ଆଠ ବର୍ଷ ପର୍ଯ୍ୟନ୍ତ ଗ୍ରହଣୀ, ଅର୍ଶ ରୋଗରେ ସେ ଏପରି ଦୁଃଖ, ଯନ୍ତ୍ରଣା ଭୋଗ କରିଥିଲେ ଯେ ଠାକୁର ମା ତାଙ୍କ ଜୀବନର ଆଶା ଛାଡ଼ି ଦେଇଥିଲେ । ଠାକୁର ମା'ଙ୍କ ଅକ୍ଳାନ୍ତ ସେବା, ଅଖଣ୍ଡ ବିଶ୍ୱାସ ଓ ଭକ୍ତିକ ହୃଦୟ କିପରି ତାଙ୍କୁ ରୋଗମୁକ୍ତ କରିଥିଲା ତାହା ଜୀବନ ଚରିତରୁ ପଢ଼ିଲେ ବିଶ୍ୱାସ କରି ହୁଏ । ସେ ଲେଖୁଛନ୍ତି ‘‘ଠାକୁର ମା ଶଯ୍ୟାରେ ବସି, କର ଯୋଡ଼ି ଜଗତର ଯାବତୀୟ ଦେବଦେବୀଙ୍କ ଠାରେ ମୋହର ପ୍ରାଣଭିକ୍ଷା କରୁଥିଲେ । ବାଲେଶ୍ୱରରେ ଦୁଇ ପୀର ଥିଲେ । ଶେଷରେ ଠାକୁର ମା ସେହି ଦୁଇ ପୀରଙ୍କୁ ଧରି ବସିଲେ । ସେମାନଙ୍କ ଠାରେ ସେ ମାନତ କଲେ ‘‘ମୋ ପିଲା ବ୍ରଜ (ଫକୀର ମୋହନଙ୍କ ଆଦ୍ୟନାମ) ଭଲ ହୋଇଗଲେ ମୁଁ ତାହାକୁ ତୁମ୍ଭମାନଙ୍କର ଫକୀର ବା ଗୋଲାମ କରିଦେବି । ରୋଗ ଛାଡ଼ିଗଲା - ମୁଁ ବଞ୍ଚିଗଲି ।’’ ସେହିଦିନ ଠାରୁ ବ୍ରଜମୋହନ, ଫକୀର ମୋହନ ନାମରେ ନାମିତ ହେଲେ । ପ୍ରତିବର୍ଷ ମହରମର ଆଠଦିନ ପାଇଁ ଠାକୁର ମା ତାଙ୍କୁ ଫକୀର କରିଦେଉଥିଲେ ।

ଫକୀର ମୋହନଙ୍କ ଜୀବନରେ ଏପରି କେତେକ ଅଲୌକିକ ଘଟଣା ଘଟିଛି, ସେ ନିଶ୍ଚିତ ମୃତ୍ୟୁମୁଖରୁ ରକ୍ଷା ପାଇ ଯାଇଛନ୍ତି । ଅନ୍ୟ ସ୍ଥଳରେ ସେ ଲେଖିଛନ୍ତି, ‘‘ପ୍ରଭୁଙ୍କ ପ୍ରସାଦରୁ ଅନେକ ଥର ମୁଁ ମୃତ୍ୟୁ ଯାତ୍ରାରୁ ରକ୍ଷା ପାଇ ଅଛି । ସେଥିର ତାଲିକା ଏହି — ତିନିଥର ଗୋକ୍ଷୁର ସାପ ମୁଖରୁ, ଥରେ ଭାଲୁ ମୁଖରୁ, ଥରେ ଅରଣ୍ୟ ମତ୍ତ ହସ୍ତୀ ଠାରୁ, ଥରେ ବନ ଗୟଳ ପଲରୁ, ଥରେ ମନୁଷ୍ୟ ହସ୍ତସ୍ଥ ତୀରରୁ, ଥରେ ମନୁଷ୍ୟ ହସ୍ତସ୍ଥ ଖଡ୍ଗରୁ, ଥରେ ବିଷପାନରୁ ଏବଂ ଦୁଇଥର ଜାହାଜ ବୁଡିରୁ ରକ୍ଷା ପାଇ ଅଛି ।’’

**ବାଲ୍ୟଶିକ୍ଷା :—**

ନବମ ବର୍ଷ ବୟସରେ ଫକୀର ମୋହନ ଗୃହାଳିରେ ବିଦ୍ୟା ଶିକ୍ଷା (ସକାଳେ ଖଡ଼ିପାଠ, ଉପରଓଳି ପୋଥି ପଢ଼ା) ଶେଷ କରି ଗୋଟିଏ ଅବୈତନିକ ପାର୍ଶୀ ସ୍କୁଲରେ ନିଜେ ନାମ ଲେଖାଇ ପାଠ ପଢ଼ିଥିଲେ । ସେ ମଧ୍ୟ ନିମକ୍ ମାହାଲ ସେରେସ୍ତାରେ କାମ ଶିଖୁବାକୁ ଲାଗିଲେ । ମାତ୍ର ବାଲେଶ୍ୱରରୁ ନିମକ୍ ମାହାଲ ଉଠିଯିବା ପରେ ଫକୀରମୋହନ ବାରବାଟୀ ସ୍କୁଲରେ ନାମ ଲେଖାଇଥିଲେ । ପ୍ରଥମ ବର୍ଷ ଶ୍ରେଣୀରେ ପ୍ରଥମ ହୋଇ ଉତ୍ତୀର୍ଣ୍ଣ ହୋଇଥିଲେ ମଧ୍ୟ ପରବର୍ଷ ମାସିକ ଗ୍ୱରିଅଣା ବେତନ ଦେଇ ନପାରିବାରୁ ତାଙ୍କ ପାଠପଢ଼ା ବନ୍ଦ ହେଲା ।

**ଅଝାଲ ସିଲାଇ :—**

ଫକୀର ମୋହନଙ୍କ ପରିବାରର କୋଳିକ ବୃତ୍ତି ଥିଲା ଅଝାଲ ସିଲାଇ । ଏକଦା ଭାରତର ପୂର୍ବ ଉପକୂଳରେ ଏକମାତ୍ର ସମୃଦ୍ଧିଶାଳୀ ବନ୍ଦର ରୂପେ ବାଲେଶ୍ୱର ବିଶ୍ୱରେ ଖ୍ୟାତି ଅର୍ଜନ କରିଥିଲା । ସେତେବେଳେ ଯେଉଁ ଜାହାଜ ଗୁଡ଼ିକ ଗତାଗତ କରୁଥିଲା ସେଗୁଡ଼ିକ ଥିଲା ପାଲଟଣା ଜାହାଜ । ପାଲ ବା ଅଝାଲ ସିଲାଇ କାର୍ଯ୍ୟ ତଦାରଖ କରିବାରେ ବଡ଼ବାପାଙ୍କ ନିର୍ଦ୍ଦେଶରେ ଫକୀର ମୋହନ ଗୋମାସ୍ତାଙ୍କୁ ସାହାଯ୍ୟ କରୁଥିଲେ ଓ ବଳକା ସମୟରେ ନିଜେ ଅଝାଲ ସିଲାଇ କରୁଥିଲେ । ଜାହାଜାତି କାର୍ଯ୍ୟ ବନ୍ଦ ହେବାରୁ ବଡ଼ବାପା ତାଙ୍କୁ ନିମକମାହାଲ କାର୍ଯ୍ୟ ଶିଖିବା ପାଇଁ କଚେ଼ରୀ ପଠାଇଥିଲେ ।

**ଶିକ୍ଷକତା :—**

ପ୍ରତିକୂଳ ପରିବେଶକୁ ପ୍ରତିହତ କରି ଅଗ୍ରଗାମୀ ହେବା, ପ୍ରତିଭାର ଏକ ଈଶ୍ୱରଦତ୍ତ ଗୁଣ । ଫକୀର ମୋହନ ଅଧିକ ପଢ଼ି ପାରିଲେ ନାହିଁ ସତ, ମାତ୍ର

କିଛିଦିନ ପରେ ସେହି ବାରବାଟୀ ସ୍କୁଲରେ ଅଢ଼େଇ ଟଙ୍କା ବେତନରେ ପ୍ରଧାନ ଶିକ୍ଷକ ଦାୟିତ୍ବ ଗ୍ରହଣ କରିଥିଲେ । ପରେ ୧୯୬୪ ମସିହାରେ ମିଶନ ସ୍କୁଲରେ ଦଶ ଟଙ୍କା ବେତନରେ ସେ ପ୍ରଧାନ ଶିକ୍ଷକ ରୂପେ ନିଯୁକ୍ତ ହୋଇଥିଲେ ।

## ଗଡ଼ଜାତ ରାଜ୍ୟରେ ଦେବାନୀ :—

ଶିକ୍ଷା ସ୍ୱଳ୍ପ ଥିଲେ ମଧ୍ୟ ବିଦ୍ୟା ଓ ବୁଦ୍ଧିରେ ଫକୀର ମୋହନ ଥିଲେ ଅସାଧାରଣ । ତେଣୁ ଉଚ୍ଚ ବ୍ରିଟିଶ ଅଫିସରମାନେ ତାଙ୍କ ପ୍ରତି ଆକୃଷ୍ଟ ହୋଇ ପଡୁଥିଲେ । ନୀଳଗିରି ରାଜ୍ୟରେ ଯେତେବେଳେ ଦେବାନୀପଦ ଖାଲି ପଡ଼ିଲା, ବାଲେଶ୍ୱରର ତତ୍କାଳୀନ କଲେକ୍ଟର ଜନ୍ ବୀମସ ଉକ୍ତ ପଦ ପାଇଁ ଫକୀର ମୋହନଙ୍କ ନାମ ସୁପାରିଶ୍ କରିଥିଲେ । ତଦନୁସାରେ ଗଡ଼ଜାତ ମାହାଲର ସୁପରିଣ୍ଟେଣ୍ଡେଣ୍ଟ ତାଙ୍କୁ ମାସିକ ଶହେଟଙ୍କା ବେତନରେ ସେହିକାର୍ଯ୍ୟରେ ନିଯୁକ୍ତି ଦେଇଥିଲେ । ଫକୀର ମୋହନ ଲେଖିଛନ୍ତି "ସନ ୧୮୭୧ ଖ୍ରୀଷ୍ଟାବ୍ଦ ଅକ୍ଟୋବର ମାସରେ ବାଲେଶ୍ୱର ଜିଲ୍ଲାର କଲେକ୍ଟର ଜନ୍ ବୀମସ୍ ସାହେବଙ୍କ ପ୍ରସ୍ତାବ ଅନୁସାରେ ଗଡଜାତ ମାହାଲର ସୁପରିଣ୍ଟେଣ୍ଡେଣ୍ଟ ମୋତେ ଶହେ ଟଙ୍କା ବେତନରେ ସେହି କାର୍ଯ୍ୟରେ ନିଯୁକ୍ତ କରି ପଠାଇଲେ ।" ବିଭିନ୍ନ ଗଡଜାତ ରାଜ୍ୟରେ ଦେବାନ କାର୍ଯ୍ୟକରି କେତେକ ରାଜାଙ୍କ ଅଜ୍ଞାତା ସମ୍ପର୍କରେ ଯେଉଁ ବର୍ଣ୍ଣନା ଦେଇଛନ୍ତି, ତାହା ଯେପରି କୌତୁହଳପ୍ରଦ ସେହିପରି ହାସ୍ୟରସପୂର୍ଣ୍ଣ । ନୀଳଗିରି (୧୮୭୧-୭୫), ଡୋମପଡ଼ା (୧୮୭୬-୭୭) ରେ ଦେବାନୀ, ଢେଙ୍କାନାଳରେ ଏସିଷ୍ଟାଣ୍ଟ ମେନେଜରୀ (୧୮୭୭-୮୩), ଦଶପଲ୍ଲା (୧୮୮୪-୮୬), ପାଲଲହଡ଼ା (୧୮୮୬-୮୭) ରେ ଦେବାନୀ କେନ୍ଦୁଝରରେ ମେନେଜରୀ (୧୮୮୭-୯୨) ଡୋମପଡ଼ାରେ ୨ୟବାର ଦେବାନୀ (୧୮୯୪-୯୬) ରୂପେ କାର୍ଯ୍ୟ କରି ଫକୀରମୋହନ ନିଜର ପ୍ରଶାସନିକ ଦକ୍ଷତା, ପ୍ରତ୍ୟୁତ୍ପନ୍ନମତିତା, ପ୍ରଜାହିତୈଷୀ ଚିନ୍ତାଧାରର ପରିଚୟ ଦେଇଛନ୍ତି । ନୀଳଗିରି-ଶେରଗଡ଼ ରାସ୍ତା, ସେତୁ ନିର୍ମାଣ, କେନ୍ଦୁଝରରେ ଜଳସେଚନ ଯୋଜନା, ଛାପାଖାନା ପ୍ରତିଷ୍ଠା, ଇତ୍ୟାଦି ପ୍ରଜାହିତକର କାର୍ଯ୍ୟ, ଫକୀର ମୋହନଙ୍କ ଦେବାନୀ - କୃତିତ୍ବର ଅକ୍ଷୟ କୀର୍ତ୍ତି ।

## ପ୍ରସିଦ୍ଧ ଚିଠି :—

ଏଠାରେ ତାଙ୍କ ଲିଖିତ ଇତିହାସ-ପ୍ରସିଦ୍ଧ ଚିଠି ବିଷୟ ଉଲ୍ଲେଖ ନକଲେ ତାଙ୍କ ବୁଦ୍ଧି, ଜ୍ଞାନ, ପ୍ରତିଭା ପ୍ରତ୍ୟୁତ୍ପନ୍ନ ମତିତା, ଚତୁରତା, ପ୍ରଶାସନିକ ଦକ୍ଷତା

ବିଷୟରେ ମୂଲ୍ୟାଙ୍କନ କରି ହେବ ନାହିଁ । କେନ୍ଦୁଝରର ପ୍ରଜାମେଳିରେ ଭୂୟାଁ ସରଦାରଙ୍କ କବଳରୁ ରାଜାଙ୍କ ପରିଜନ, ରାଜପ୍ରାସାଦ ଓ ନିଜର ଆତ୍ମରକ୍ଷା ପାଇଁ ଯେଉଁ ଇତିହାସ ପ୍ରସିଦ୍ଧ ପତ୍ର ଲେଖିଥିଲେ, ସାମରିକ କଳା ଓ ସାହିତ୍ୟର ଶ୍ଲେଷାତ୍ମକ ଭାଷା ଦୃଷ୍ଟିରୁ ତାହା ଅଦ୍ୱିତୀୟ । ବିଶ୍ୱର ସମର ଇତିହାସରେ ଓ ବିଶ୍ୱ ସାହିତ୍ୟରେ ଏହି ପତ୍ରଟି ଏକ ଅମୂଲ୍ୟ ରତ୍ନ । ପତ୍ରଟି ହେଲା — "ଭୋଳାନାଥ ଖମାରିଆ ଜାଣିବୁ — ମହାରାଣୀ ପୁତ୍ରଙ୍କ ସକାଶେ ନିତାନ୍ତ ଦରକାର — ଅତି ଶୀଘ୍ର ଶହେ ହେଲେ ପାନ, ଦୁଇ ଶହ ଗୁଆ ପଠାଇବୁ । ଉତ୍ତର ପଟରୁ ମାହାରା କରି ଆଖୁ ବାଡ଼ିକୁ ଶୀଘ୍ର ପାଣି ବୁହାଇବୁ । ନୋହିଲେ ଆଖୁବାଡ଼ି ବିନାଶ ଯିବ ବୋଲି ଜାଣିବୁ । ଇତି । ଫକୀର ମୋହନ ସେନାପତି," ଫକୀର ମୋହନ ତାର ତିନିଖଣ୍ଡ ସହିତ ଏହି ପତ୍ରଟିକୁ ପାଇକମାନଙ୍କ ହାତରେ ଆନନ୍ଦପୁରରେ ଥିବା କେନ୍ଦୁଝର ମହାରାଜାଙ୍କ ନିକଟକୁ ପଠାଇ ଦେଲେ । ଉକ୍ତ ତାର ତିନି ଖଣ୍ଡକୁ ଗବର୍ଣ୍ଣମେଣ୍ଟ, କଟକ ସୁପରିଣ୍ଟେଣ୍ଡେଣ୍ଟ, ଆଉ ଜଣେ ନନ୍ଦବାବୁ ବା ମଧୁବାବୁଙ୍କୁ ତାର ଖବର ଦେବା ବିଷୟ ଅର୍ଥ କରାଗଲା । ପାନ ଅର୍ଥ ସିପାହୀ, ଗୁଆ ଅର୍ଥ ବନ୍ଧୁକର ଗୁଳି, ଅର୍ଥାତ୍ ବନ୍ଧୁକଧାରୀ ସିପାହୀ, ଆଖୁବାଡ଼ି ଅର୍ଥ ଗଡ଼ ରୂପେ ଗ୍ରହଣ କରାଯାଯାଇଥିଲା । ଚିଠିର ଅର୍ଥଥିଲା ଉତ୍ତର ଦିଗରୁ ଅର୍ଥାତ୍ ଗ୍ରଇଁବସା ତରଫରୁ ସିପାହୀ ଶୀଘ୍ର ନଗଲେ ଗଡ଼ ଲୁଟ୍‌ପାଟ୍ ଓ ନଷ୍ଟ ହୋଇଯିବ । ଏହି ପତ୍ର-ଅନୁସାରେ ବନ୍ଧୁକଧାରୀ ସିପାହୀମାନେ କେନ୍ଦୁଝରରେ ପ୍ରବେଶକରି ଗଡ଼ର ରାଜ-ପରିଜନ, ବନ୍ଦୀ ସିପାହୀ ଓ ଫକୀର ମୋହନଙ୍କୁ ରକ୍ଷା କରିଥିଲେ ।

## ଓଡ଼ିଆଭାଷା ସୁରକ୍ଷା ଆନ୍ଦୋଳନର ସେନାପତି :—

ଆଦ୍ୟାବସ୍ଥାରେ ବ୍ରିଟିଶ ଭାରତର ରାଜଧାନୀ ଓ ପରେ ବଙ୍ଗ ବିହାର ଓଡ଼ିଶାର ରାଜଧାନୀ ରୂପେ କଲିକତା ଦୀର୍ଘକାଳ ଧରି ସୁଯୋଗ ଲାଭ କରିବାରୁ ସବୁକ୍ଷେତ୍ରରେ ବଙ୍ଗୀୟମାନେ ଅନ୍ୟଭାଷାଭାଷୀ ଅଞ୍ଚଳ ଉପରେ ନିଜର ଆଧିପତ୍ୟ ବିସ୍ତାର କରିବାକୁ ଅବାଧ ସୁଯୋଗ ଲାଭ କରିଥିଲେ । ବ୍ରିଟିଶ୍ କୃପାଦୃଷ୍ଟିପାଇ ପାଶ୍ଚାତ୍ୟ ଶିକ୍ଷା କ୍ଷେତ୍ରରେ ସେମାନେ କେବଳ ଅଗ୍ରଣୀ ନଥିଲେ ଚାକିରୀ କ୍ଷେତ୍ରରେ ସେମାନେ ଅଗ୍ରାଧିକାର ଲାଭ କରିଥିଲେ । ଭାରତର ସମସ୍ତ ଅଞ୍ଚଳ ଇଂରେଜମାନେ ଦଖଲ କରିଥିଲେ ମଧ୍ୟ ପ୍ରବଳ ପ୍ରତିରୋଧ ଯୋଗୁଁ ଇଂରେଜମାନେ ଓଡ଼ିଶାରେ ପ୍ରବେଶ କରିପାରିନଥିଲେ । ଏତଦ୍ ବ୍ୟତୀତ ଘୁମସର୍‌ର ପାଇକମାନେ ଇଂରେଜମାନଙ୍କ ଓଡ଼ିଶା ଆକ୍ରମଣକୁ ଯେପରି ପ୍ରତିହତ କରିଥିଲେ, ଭାରତର ଅନ୍ୟ ଅଞ୍ଚଳରେ ସେପରି ପ୍ରାୟ ଘଟି ନ

ଥିଲା । ସୁତରାଂ ଓଡ଼ିଆ ଜାତି ବିରୁଦ୍ଧରେ ଇଂରେଜମାନଙ୍କ ମନରେ ଏକ ପ୍ରତିଶୋଧାତ୍ମକ ଭାବ ସଞ୍ଚରିତ ହୋଇଥିଲା । ଏହାରି ସୁଯୋଗରେ ଇଂରେଜ ଶାସନର ଛତ୍ରଛାୟା ତଳେ ରହି ବଙ୍ଗୀୟମାନେ ଓଡ଼ିଶାର ବିଦ୍ୟାଳୟ କୋର୍ଟ-କଚେରୀରୁ ଓଡ଼ିଆ ଭାଷାକୁ ସମ୍ପୂର୍ଣ୍ଣ ରୂପେ ଉଚ୍ଛେଦ କରିବା ପାଇଁ ଏକ ସୁଚିନ୍ତିତ ଷଡ଼ଯନ୍ତ୍ର ଚଳାଇଥିଲେ । ଏହି ହୀନ ଷଡ଼ଯନ୍ତ୍ରର ପ୍ରକାଶ୍ୟ ଅଭିବ୍ୟକ୍ତି ହେଉଛି ବାଲେଶ୍ୱର ଜିଲ୍ଲା ସ୍କୁଲର ତତ୍‌କାଳୀନ ପଣ୍ଡିତ କାନ୍ତି ଚନ୍ଦ୍ର ଭଟ୍ଟାଚାର୍ଯ୍ୟଙ୍କ ଲିଖିତ ପୁସ୍ତକ — "ଓଡ଼ିଆ ଏକ ସ୍ୱତନ୍ତ୍ର ଭାଷା ନହେ" । ଏହି ପୁସ୍ତକରେ ସେ ଦର୍ଶାଇଥିଲେ ଯେ ଓଡ଼ିଆ ଗୋଟିଏ ସ୍ୱତନ୍ତ୍ର ଭାଷା ନୁହେଁ । ଏହା ବଙ୍ଗାଳା ଭାଷାର ଏକ ଉପଭାଷା । ପୁନଶ୍ଚ ସେ ଏଥିରେ ଯୁକ୍ତି କରି କହିଥିଲେ ଯେ ଓଡ଼ିଶାର ବିଦ୍ୟାଳୟ କୋର୍ଟ-କଚେରୀରୁ ଓଡ଼ିଆ ଭାଷା ଉଠାଇଦେଇ ବଙ୍ଗଳାଭାଷା ପ୍ରବର୍ତ୍ତନ କଲେ ଓଡ଼ିଆଙ୍କର କୌଣସି ଅସୁବିଧା ହେବନାହିଁ ।

ଓଡ଼ିଆଭାଷା ବିଲୋପ ଆନ୍ଦୋଳର ପୃଷ୍ଠଭୂମି ଅନୁଧ୍ୟାନ କଲେ ଏହା ଯେ ଏକ ଧାରାବାହିକ ସୁଚିନ୍ତିତ ଷଡ଼ଯନ୍ତ୍ର ତାହା ସହଜରେ ଅନୁମାନ କରିହେବ । ବଙ୍ଗୀୟ ପ୍ରତ୍ନତତ୍ତ୍ୱବିତ୍ ରାଜେନ୍ଦ୍ରଲାଲ ମିତ୍ର ଖ୍ରୀ୧୮୬୮ ରେ କଟକ ଡିବେଟିଂ କ୍ଲବରେ ବଙ୍ଗାଳୀମାନଙ୍କ ଦ୍ୱାରା ଆୟୋଜିତ ଏକ ଆଲୋଚନା ସଭାରେ ସ୍ୱଲିଖିତ ପ୍ରବନ୍ଧ ପାଠ କରି ଦର୍ଶାଇଥିଲେ ଯେ ଓଡ଼ିଆ ହେଉଛି ବଙ୍ଗାଳା ଭାଷାର ଏକ ସାରହୀନ କ୍ଷୁଦ୍ର ଉପଭାଷା । ସେଦିନ ସେ ଭାଷଣରେ କହିଥିଲେ ଯେ "ଉତ୍କଳର ଯଥାର୍ଥ ହିତାକାଂକ୍ଷୀ ଯେ ହେବେ ସେ ସର୍ବାଗ୍ରେ ଉତ୍କଳ ଭାଷା ଉଠାଇ ଦେଇ ବଙ୍ଗ ଭାଷା ପ୍ରଚଳନ କରିବାର ଚେଷ୍ଟା କରିବେ । ଉତ୍କଳର ଲୋକସଂଖ୍ୟା ବର୍ତ୍ତମାନ କୋଡ଼ିଏ ଲକ୍ଷ ଓ ଏଥିରେ ସ୍ତ୍ରୀ ବାଳକ ଇତ୍ୟାଦି ବାଦ୍‌ଦେଲେ କେବଳ ଦଶବାରଲକ୍ଷ ଲୋକ ଲେଖାପଢ଼ା ଜାଣିବାର ସମ୍ଭବ । କିନ୍ତୁ ଏତିକି ଲୋକ କି ଗୋଟିଏ ସ୍ୱତନ୍ତ୍ର ଭାଷା ରଖିପାରନ୍ତି ?" ଏହା ପୂର୍ବରୁ ୧୮୬୪ ମସିହାରେ କଟକରେ ଡେପୁଟି ଇନିସପେକ୍ଟର ବଙ୍ଗୀୟ ଉମାଚରଣ ହାଲଦାର ମତ ଦେଇଥିଲେ ଯେ ଓଡ଼ିଶାର ବିଦ୍ୟାଳୟମାନଙ୍କରେ ଉଭୟ ବଙ୍ଗଳା ଓ ଓଡ଼ିଆ ଭାଷା ମାଧ୍ୟମରେ ଶିକ୍ଷାଦାନ ଶିକ୍ଷୋନ୍ନତିର ପ୍ରଧାନ ଅନ୍ତରାୟ । ଓଡ଼ିଆ ଭାଷାରେ ବ୍ୟାକରଣ ଓ ପାଠ୍ୟପୁସ୍ତକ ଅଭାବ ହେତୁ ଓଡ଼ିଶାରେ ବଙ୍ଗଳାଭାଷାରେ ଶିକ୍ଷାଦାନ, ବଙ୍ଗଳା ପାଠ୍ୟପୁସ୍ତକ ପ୍ରଚଳନ ଓ ସରକାରୀ ଭାଷା ଭାବରେ ବଙ୍ଗାଳାଭାଷାର ପ୍ରଚଳନ ଏକାନ୍ତ ଆବଶ୍ୟକ ବୋଲି ସେ ମତ ଦେଇଥିଲେ । କାନ୍ତିଚନ୍ଦ୍ରଙ୍କ ପୁସ୍ତକ ଲିଖନ ମୂଳରେ ମଧ୍ୟ ଏପରି ବିଚିତ୍ର ଯୁକ୍ତି ଥିଲା । ଓଡ଼ିଆ ଣ, ଳ, ଉଚ୍ଚାରଣରେ ଉପହସିତ ହେବାରୁ ସେ

କ୍ରୋଧାନ୍ୱିତ ହୋଇ କହିଥିଲେ "ଆରେ ଉଡ଼ିୟା ତ ସ୍ୱତନ୍ତ୍ର ଭାଷା ନହେ, ବାଙ୍ଗଲାର ବିକୃତ ମାତ୍ର । ଉଡ଼େ ପଢ଼ାର ଆଉ ଦରକାର କି ?" ଏଣୁ ଏହିପରି ଅବାନ୍ତର ଯୁକ୍ତି ଦେଇ, ମିଥ୍ୟା ତଥ୍ୟର ଆଶ୍ରୟ ନେଇ ସେ ଉପରୋକ୍ତ ପୁସ୍ତକ ରଚ଼ନା କରିଥିଲେ କିନ୍ତୁ ଓଡ଼ିଆ ଭାଷାରେ ଯାହାର ସାମାନ୍ୟ ଜ୍ଞାନ ଥିବ ସେ ଉପଲବ୍ଧି କରିପିରବ, କିପରି ତାଙ୍କ ଯୁକ୍ତି ହାସ୍ୟାସ୍ପଦ, ଅଜ୍ଞାନତା ପ୍ରସୂତ ଓ ଈର୍ଷା ପ୍ରଣୋଦିତ ।

ଓଡ଼ିଶାର ବଙ୍ଗୀୟ କର୍ମଚ଼ାରୀମାନେ ବ୍ରିଟିଶ ହାକିମଙ୍କୁ ପ୍ରଭାବିତ କରି ଓଡ଼ିଶାର ଓଡ଼ିଆ ଭାଷାକୁ ଉଚ୍ଛେଦ କରିବା ପାଇଁ ଆପ୍ରାଣ ଉଦ୍ୟମ କରିଥିଲେ ଏବଂ ଓଡ଼ିଆ-ମାରଣ-ଯଜ୍ଞରେ ଘୃତଢାଳିଥିଲେ । ଫଳରେ ଓଡ଼ିଶାର ତତ୍କାଳୀନ କମିଶନର ମିଲ୍ସ ସାହେବ କଚ଼େରୀମାନଙ୍କରେ ଓଡ଼ିଆଭାଷାର ପ୍ରଚ଼ଳନ ବିରୁଦ୍ଧରେ ଏବଂ କଟକ ଜିଲ୍ଲା ମାଜିଷ୍ଟ୍ରେଟ୍ କାଉରିଙ୍ଗ୍ ସାହେବ ଓଡ଼ିଶାର ବିଦ୍ୟାଳୟ ମାନଙ୍କରେ ଓଡ଼ିଆ ପାଠ୍ୟପୁସ୍ତକ ପ୍ରଚ଼ଳନ ବିରୁଦ୍ଧରେ ନିଜ ନିଜ ମତ ପ୍ରଦାନ କରିଥିଲେ । ମାତ୍ର ଏତାଦୃଶ ଏକଦେଶଦର୍ଶୀ ମତ ବିରୁଦ୍ଧରେ କେତେକ ଇଂରେଜ ପତ୍ରିକା ଓ ବରିଷ୍ଠ ଇଂରେଜ ହାକିମ ସ୍ୱର ଉତ୍ତୋଳନ କରି ଓଡ଼ିଆ ଭାଷାର ସୁରକ୍ଷା ପାଇଁ ଫକୀର ମୋହନ ଯେଉଁ ଆନ୍ଦୋଳନ ଆରମ୍ଭ କରିଥିଲେ ତାହାକୁ ପରୋକ୍ଷ ଓ ପ୍ରତ୍ୟକ୍ଷ ଭାବରେ ସାହାଯ୍ୟ କରିଥିଲେ । "କଲିକତା ରିଭିଉ" ନାମକ ତ୍ରୈମାସିକ ଇଂରେଜୀ ପତ୍ରିକାର ମତ ଉଦ୍ଧାର କରି "ଉତ୍କଳ ଦୀପିକା" (୨୩/୧୨/୧୮୭୧) ରେ ଯାହା ଲେଖିଥିଲେ ତାହା ଥିଲା ଏ ଚ଼କ୍ରାନ୍ତ ବିରୁଦ୍ଧରେ ସତର୍କବାଣୀ । ଦୀପିକା ଲେଖିଥିଲେ "ଓଡ଼ିଶାର ତିନି କୋଟି ଲୋକ କେବଳ ଏଭାଷାରେ କଥାବାର୍ତ୍ତା କରନ୍ତି, ଏମନ୍ତ ନୁହେଁ । ଏ ଭାଷାରେ ପୂର୍ବରୁ ଅନେକ ସାହିତ୍ୟ-ଗ୍ରନ୍ଥ ରଚ଼ନା ହୋଇଅଛି ଓ ଦିନ ଦିନ ରଚ଼ନା ବୃଦ୍ଧି ହେଉଅଛି । ଅତଏବ ଓଡ଼ିଶାର ଲୋକଙ୍କୁ ବଳପୂର୍ବକ ବଙ୍ଗଳା ଭାଷା ଶିକ୍ଷା ଦେଲେ ଗଭର୍ଣ୍ଣମେଣ୍ଟ ସେହି ପ୍ରାୟ ଅନ୍ୟାୟ କରନ୍ତେ କି ଯେମନ୍ତ ପ୍ରସିଆ ଗଭର୍ଣ୍ଣମେଣ୍ଟ ଉପର ଉଚ୍ଚଭାଷା ହୋଲଷ୍ଟିନ୍‌ଠାରେ ପ୍ରଚ଼ାର ବିଷୟରେ ଅନ୍ୟାୟାଚ଼ରଣ କରିଥିଲେ ।"

## ଫକୀରମୋହନ ଓ ଜନ ବୀମସ୍ : —

ଓଡ଼ିଆ ଭାଷା ସୁରକ୍ଷା ପାଇଁ ଫକୀର ମୋହନ ବାଲେଶ୍ୱରରେ ଯେଉଁ ଆନ୍ଦୋଳନ ଆରମ୍ଭ କରିଥିଲେ ତାହାକୁ କାୟମନୋବାକ୍ୟରେ ସାହାଯ୍ୟ କରିଥିଲେ ବାଲେଶ୍ୱରର ତତ୍କାଳୀନ ବହୁଭାଷାବିତ୍ ପଣ୍ଡିତ ତଥା କଲେକ୍ଟର

ଜନ୍ ବୀମସ୍ । ଫକୀରମୋହନ ତାଙ୍କ ଆତ୍ମଜୀବନୀ ଚରିତରେ ବୀମସ୍ଙ୍କ ସମ୍ପର୍କରେ ଲେଖିଛନ୍ତି, ‘‘ସାକ୍ଷାତରେ ସାହେବଙ୍କ ସହିତ ସଚରାଚର ଭାଷା ସମ୍ବନ୍ଧରେ ଚର୍ଚ୍ଚା ହୋଇଥାଏ । କେଉଁଦିନ ସଂସ୍କୃତ ଶ୍ଳୋକ, କେବେ ବା ବଙ୍ଗଳା ପଦ୍ୟ, ଓଡ଼ିଆ ରସକଲ୍ଲୋଳ, ସାପମନ୍ତ୍ର, ଡାହାଣୀ ମନ୍ତ୍ର ଏହି ସମସ୍ତ ବିଷୟରେ କଥୋପକଥନ ହୋଇଥାଏ । ବାଲେଶ୍ୱରରେ ସ୍ତ୍ରୀ ଶିକ୍ଷା ପ୍ରଗ୍ୱର ଏବଂ ଉତ୍କଳ ଭାଷାର ରକ୍ଷା ଏବଂ ପୁଷ୍ଟି ସାଧନ ବିଷୟରେ ମୁଁ ବୀମସ୍ ସାହେବଙ୍କଠାରୁ ଯଥେଷ୍ଟ ସାହାଯ୍ୟପ୍ରାପ୍ତ ହୋଇଅଛି । ସାହେବ ମହୋଦୟ ମୋତେ ଅନେକଥର ଅନେକପ୍ରକାର ବିପଦରୁ ରକ୍ଷା କରିଛନ୍ତି । ମୋର ସାଂସାରିକ ସର୍ବପ୍ରକାର ଉନ୍ନତିର ଏକମାତ୍ର ମୂଳାଧାର ମହାତ୍ମା ଜନ ବୀମସ୍ ।’’ ବଙ୍ଗୀୟମାନଙ୍କ ଯୁକ୍ତିଥିଲା ସ୍ୱଳ୍ପ ସଂଖ୍ୟକ ଓଡିଆମାନେ ନିଜ ମାତୃବାଷା ପରିବର୍ତ୍ତେ ସମୃଦ୍ଧ ବଙ୍ଗଳାକୁ ନିଜର ମାତୃଭାଷା ରୂପେ ଗ୍ରହଣ କରିବା ବିଧେୟ । ଜନ୍ ବୀମସ୍ ଏହି ଯୁକ୍ତିକୁ ଖଣ୍ଡନ କରି ଲେଖୁଥିଲେ ‘‘ଯଦି ଅଳ୍ପ ସଂଖ୍ୟକ ଲୋକ କହନ୍ତି ବୋଲି ସ୍ୱତନ୍ତ୍ର ଭାଷା ହିବାବରେ ଓଡ଼ିଆର ପ୍ରୟୋଜନ ନାହିଁ, ତେବେ ଅନ୍ୟମାନଙ୍କ ପ୍ରତି ମଧ୍ୟ ସେହି ଯୁକ୍ତି ପ୍ରଯୁକ୍ତ ହୋଇପାରିବ ଏବଂ ଡଚ୍, ଡାନିସ୍ ଓ ପର୍ତ୍ତୁଗୀଜ୍ ଭାଷାକୁ ମଧ୍ୟ ସ୍ୱତନ୍ତ୍ର ଭାଷା ରୂପେ ରଖିବାର ଅବକାଶ ରହିବ ନାହିଁ । ଏହି ସବୁ ନୀତି ଅତ୍ୟନ୍ତ ପିଲାଳିଆ, ରାଜନୀତି ପ୍ରଣୋଦିତ ଓ ଅଭିସନ୍ଧିମୂଳକ ।’’

ଓଡ଼ିଆ-ହିତୈଷୀ ଏହି ବୀମସ୍ଙ୍କ ପ୍ରତି ଫକୀରମୋହନଙ୍କ କିପରି ଭକ୍ତି ଓ ସମ୍ମାନବୋଧ ଥିଲା, ତାହା ୧୮୮୦ ମସିହାରେ ମୁଦ୍ରିତ ‘‘ରାମାୟଣ ବାଳକାଣ୍ଡ’’ ପୁସ୍ତକରେ ସଂଯୁକ୍ତ ନିମ୍ନଲିଖିତ ‘‘ଉତ୍ସର୍ଗ ପତ୍ର’’ରୁ ଅନୁମାନ କରିହେବ — “To John Beams Esquire B.C.S. / Honoured Sir / I beg most respectfully to dedicate this work to you as a token of the affectionate gratitude which Orissa has always felt towards you for the intelligent and heart felt interest you have evinced in the imporvement of the Oriya language and in the welfare of her people.”

ଫକୀର ମୋହନଙ୍କ ଅକ୍ଳାନ୍ତ ପରିଶ୍ରମ ଓ ଦକ୍ଷ ସାଙ୍ଗଠନିକ ଶକ୍ତି ଯୋଗୁଁ ଓଡ଼ିଆ ଭାଷାକୁ ଉଚ୍ଛେଦ କରି ବଙ୍ଗାଳା ଭାଷା ପ୍ରଚଳନ ପାଇଁ ଯେଉଁ ହୀନଚକ୍ରାନ୍ତ ଗ୍ୱଲିଥିଲା, ତାହାର ଅବସାନ ଘଟିଥିଲା ଏବଂ ଓଡ଼ିଶାର ସ୍କୁଲ, କୋର୍ଟ କଚେରୀରେ ଓଡ଼ିଆ ଭାଷା ପ୍ରଚଳିତ ହୋଇଥିଲା । ଏହି ଭାଷା ରକ୍ଷା ଆନ୍ଦୋଳନରେ ନିଜର ତିକ୍ତ ଅନୁଭୂତି ବିଷୟ ବର୍ଣ୍ଣନା କରି ଫକୀର ମୋହନ

"ଆତ୍ମଜୀବନୀ ଚ଼ରିତ" ରେ ଲେଖିଛନ୍ତି — "ସଭାସିତିତିରେ ବକ୍ତୃତା, ସମ୍ବାଦ ବାହିକାରେ ଲେଖାଲେଖି ଏବଂ ପ୍ରକାଶ୍ୟରେ ତୀବ୍ର ଭାବରେ ତର୍କବିତର୍କ କରିବାରୁ , ମୁଁ ବଙ୍ଗାଳୀ ସମାଜର ପରମ ଶତ୍ରୁ ହୋଇ ପଡ଼ିଲି । ବଙ୍ଗାଳୀବାବୁମାନେ ଅତ୍ୟନ୍ତ ଘୃଣା ଯୋଗୁଁ ମୋ ନାମ ଧରନ୍ତି ନାହିଁ — କହନ୍ତି, ଶାଲା ରିଂଲିଡ଼ର୍" ।

## ବାଲେଶ୍ୱରରେ ପ୍ରଥମ ଛାପାଖାନା ସ୍ଥାପନ —

ଓଡ଼ିଆ ଭାଷାକୁ ମୃତ୍ୟୁମୁଖରୁ ରକ୍ଷା କରି ଫକୀରମୋହନ ନୀରବ ହୋଇ ବସିନଥିଲେ । ଓଡ଼ିଶାରେ ନିଯୁକ୍ତ ବଙ୍ଗୀୟ କର୍ମଚାରୀମାନଙ୍କର ଗୋଟିଏ ଅଭିଯୋଗ ଥିଲା — ଓଡ଼ିଆରେ ମୁଦ୍ରିତ ପାଠ୍ୟ ପୁସ୍ତକ ନାହିଁ । ତେଣୁ ବିଦ୍ୟାଳୟ ମାନଙ୍କରେ ଓଡ଼ିଆ ଭାଷାରେ କଷ୍ଟସାଧ୍ୟ । ବଙ୍ଗୀୟମାନଙ୍କର ଏହି ଯୁକ୍ତି ଫକୀରମୋହନଙ୍କ ପ୍ରତି ଏକ ଆହ୍ୱାନ ଥିଲା । ସେ ମଧ୍ୟ ଉପଲବ୍ଧି କରିଥିଲେ ଯେ ଉନ୍ନତ ପଡ଼ୋଶୀ ଭାଷା- ସାହିତ୍ୟ ସହିତ ସମକକ୍ଷ କରିବାକୁ ହେଲେ ଓଡ଼ିଆ ଭାଷାରେ ପାଠ୍ୟପୁସ୍ତକ, ସମ୍ବାଦପତ୍ର ଓ ସାହିତ୍ୟ ପତ୍ରିକାର ପ୍ରକାଶନ ଏକାନ୍ତ ଅପରିହାର୍ଯ୍ୟ । ସେଥିପାଇଁ ପ୍ରଥମ ପଦକ୍ଷେପ ସ୍ୱରୂପ ସେ "ପି.ଏମ. ସେନାପତି ଏଣ୍ଡ.କୋ, ଉତ୍କଳ ପ୍ରେସ୍" ନାମକ ଏକ କମ୍ପାନୀ ଗଠନ ପୂର୍ବକ ବାରଶହ ଟଙ୍କା ସଂଗ୍ରହ କରି ବାଲେଶ୍ୱରରେ ପ୍ରେସ୍ ସ୍ଥାପନ କରିଥିଲେ ଏବଂ ନିଜ ଖର୍ଚ୍ଚରେ ନିଜ ମାମୁଁ ପୁଅ ଭାଇକୁ କଲିକତା ପଠାଇଥିଲେ କମ୍ପୋଜିସନ ଓ ପ୍ରିଣ୍ଟିଂରେ ତାଲିମ୍ ନେବା ପାଇଁ । ପ୍ରଥମ ମୁଦ୍ରଣ ଯନ୍ତ୍ରରେ ପ୍ରତାରିତ ହୋଇ ସେ କିପରି ହାସ୍ୟାସ୍ପଦ ହୋଇଥିଲେ ଏବଂ ପ୍ରଥମ ମୁଦ୍ରିତ କାଗଜ ଦେଖିବା ପାଇଁ ସେଦିନ ମୋତିଗଞ୍ଜ ବଜାରସ୍ଥ ତାଙ୍କ ପ୍ରେସ୍ ସାମ୍ନାରେ ଅପେକ୍ଷାରତ ଶହ ଶହ ଦର୍ଶକଙ୍କୁ ନିଜର ପ୍ରତ୍ୟୁତ୍ପନ୍ନ ମତିତା ବଳରେ ମେଞ୍ଚାମେଞ୍ଚା କାଳିଯୁକ୍ତ କାଗଜ ଦେଖାଇ କହିଥିଲେ "ଆଜି କାଗଜରେ କେବଳ କାଳି ନିଆଗଲା । ଏ ଭତ୍ତାରେ ଏହିସବୁ କାଳି ଅକ୍ଷର ପାଲଟିଯିବ" । ବ୍ୟବସାୟିକ ଷଠତାର କରୁଣ କାହାଣୀକୁ ସେ ଯେପରି ଲୁଚାଇ ରଖିଥିଲେ, ସେଗୁଡ଼ିକ ହେଉଛି ମୁମୂର୍ଷୁ ଓଡ଼ିଆ ଭାଷା ଓ ଭଗ୍ନଜାନୁ-ଓଡ଼ିଆ ଜାତିର ମର୍ମନ୍ତୁଦ ଇତିହାସ ।

ମେଦିନପୁର ବ୍ୟବସାୟୀଙ୍କଠାରୁ ଏପରି ତ୍ରୁଟିପୂର୍ଣ୍ଣ ମୁଦ୍ରଣଯନ୍ତ୍ର କ୍ରୟ କରି ପ୍ରତାରିତ ଓ କ୍ଷତିଗ୍ରସ୍ତ ହୋଇଥିଲେ ମଧ୍ୟ ଫକୀରମୋହନ ହତୋତ୍ସାହ ହୋଇ ନଥିଲେ । ଓଡ଼ିଆ ପ୍ରେସ୍ ସ୍ଥାପନ ପାଇଁ ତାଙ୍କର ସଂକଳ୍ପ ଅଧିକ କଠୋର

ହୋଇଥିଲା । ସେ ଶପଥ ନେଇଥିଲେ — ''ପ୍ରେସ୍ ସ୍ଥାପନ, ନଚେତ୍ ଜୀବନ ତ୍ୟାଗ'' । ନିଜ ବନ୍ଧୁ କିଶୋରୀମୋହନ ଦାସଙ୍କଠାରୁ ଆଠଶହ ଟଙ୍କା ଧାର ଆଣି କଲିକତାରୁ ଦ୍ୱିତୀୟ ପ୍ରେସ୍ କ୍ରୟ କଲେ ।

ଏହି ପ୍ରେସ୍ ସ୍ଥାପନ ପାଇଁ ଫକୀରମୋହନଙ୍କୁ ଅକ୍ଳାନ୍ତ ପରିଶ୍ରମ କରିବାକୁ ପଡ଼ିଥିଲା । ଅନିୟମିତ ଆହାର, ଅନିଦ୍ରା, ମାନସିକ ଯନ୍ତ୍ରଣା, ଦୁଶ୍ଚିନ୍ତା ଯୋଗୁଁ ତାଙ୍କୁ ଏକାଧିକ ବାର ଆମାଶୟ ରୋଗ ଆକ୍ରମଣ କରିଥିଲା । ଥରେ ସେ ମଧ୍ୟ ଅଚେତ୍ ହୋଇ ଯାଇଥିଲେ । ପ୍ରେସ୍ କାର୍ଯ୍ୟ କରୁଥିବା ସମୟରେ ରକ୍ତଝାଡ଼ା ବୋହି ଯାଉଥିବା ବିଷୟ ଆତ୍ମଜୀବନୀରେ ସେ ଲେଖିଯାଇଛନ୍ତି । ପ୍ରେସ୍ ସ୍ଥାପନ ପାଇଁ ସେ ଯେଉଁ ଆର୍ଥିକ ଅନାଟନ, ଶାରୀରିକ ଯନ୍ତ୍ରଣା, ଲଜ୍ଜା, ଅପମାନ, ଦୁଃଖ ଓ ଦୁର୍ଦ୍ଦଶା ଭୋଗ କରିଛନ୍ତି ତାହା ପଢ଼ିଲେ ପ୍ରତ୍ୟେକ ସ୍ୱାଭିମାନୀ ଓଡ଼ିଆ ଆଖିରେ ଲୁହ ଭରିଯିବ ।

## ଓଡ଼ିଆ ପାଠ୍ୟପୁସ୍ତକ ମୁଦ୍ରଣ :—

ଏହି ପ୍ରେସ୍‌ରୁ ନିମ୍ନଲିଖିତ ସ୍ୱରଚିତ ପାଠ୍ୟପୁସ୍ତକ ମୁଦ୍ରଣ କରି ଓଡ଼ିଶାରେ ପାଠ୍ୟପୁସ୍ତକର ଅଭାବକୁ ଦୂର କରିଥିଲେ ଏବଂ ବଙ୍ଗୀୟମାନଙ୍କ ଅଭିଯୋଗକୁ ପ୍ରତିହତ କରିଥିଲେ । ତାଙ୍କ ରଚିତ ଓ ମୁଦ୍ରିତ ପୁସ୍ତକ ଗୁଡ଼ିକ ହେଲା — (୧) ଭାରତବର୍ଷର ଇତିହାସ, ପ୍ରଥମ ଭାଗ (୧୮୬୯), ଦ୍ୱିତୀୟ ଭାଗ (୧୮୭୦), (୨) ଅଙ୍କମାଳା, ଦ୍ୱିତୀୟ ଭାଗ (୧୮୭୦), (୩) ପୁଷ୍ପମାଳା (ନିଜସ୍ୱ କବିତା ସଂକଳନ) (୪) ଓଡ଼ିଆ ବ୍ୟାକରଣ, (୫) ଜୀବନ ଚରିତ (ଈଶ୍ୱରଚନ୍ଦ୍ର ବିଦ୍ୟାସାଗରଙ୍କ ରଚିତ ବଙ୍ଗଳା 'ଜୀବନ ଚରିତ'ର ଅନୁବାଦ) (୬) ଚରିତାବଳୀ । କବିବର ରାଧାନାଥ ରାୟ ପ୍ରଭୃତି ଲେଖକଙ୍କ ପାଠ୍ୟପୁସ୍ତକ ମଧ୍ୟ ମୁଦ୍ରିତ ହୋଇଥିଲା ।

## ଓଡ଼ିଆ ସମ୍ବାଦପତ୍ର ପ୍ରକାଶନ :—

ଓଡ଼ିଆ ଜାତି ଓ ଓଡ଼ିଆ ଭାଷା ପ୍ରତି ଫକୀରମୋହନଙ୍କ ଅନ୍ୟ ଏକ ଅବିସ୍ମରଣୀୟ ଅବଦାନ ହେଉଛି 'ସମ୍ବାଦ ବାହିକା' ସମ୍ବାଦପତ୍ର ପ୍ରକାଶନ । ଓଡ଼ିଆ ଜାତି ମଧ୍ୟରେ ଜାଗରଣ ଅଭାବ ଯୋଗୁଁ ବ୍ରିଟିଶ୍ ସରକାରଙ୍କ ନିକଟରେ ଓଡ଼ିଶାର ଅଭାବ ଅଭିଯୋଗ ଯଥାର୍ଥ ଭାବରେ ଓ ଯଥାସମୟରେ ଉପସ୍ଥାପିତ ହୋଇପାରୁନାହିଁ ବୋଲି ଫକୀର ମୋହନ ଉପଲବ୍ଧି କରିଥିଲେ । ତେଣୁ ତାଙ୍କର ତୃତୀୟ ଲକ୍ଷ୍ୟ ଥିଲା ଓଡ଼ିଆ ସମ୍ବାଦ ପତ୍ର ପ୍ରକାଶନ । ପଡ଼ୋଶୀ

ଭାଷାଭାଷୀ ସମ୍ବାଦପତ୍ର ଗୁଡ଼ିକ ସେତେବେଳକୁ ଯଥେଷ୍ଟ ଉନ୍ନତି କରିସାରିଲାଣି । ଅବଶ୍ୟ ସେତେବେଳକୁ ଗୌରୀ ଶଙ୍କର ରାୟ ଓ ଭୁବନାନନ୍ଦ ଦାସଙ୍କ ଉଦ୍ୟମରେ କଟକରେ ୧୮୬୬ ମସିହାରୁ ଓଡ଼ିଆ ଭାଷାରେ 'ଉତ୍କଳ ଦୀପିକା' ସମ୍ବାଦ ପତ୍ର ନିୟମିତ ପ୍ରକାଶ ପାଉଥାଏ । ଜିଲ୍ଲା, ପ୍ରଦେଶ ଓ କେନ୍ଦ୍ରସ୍ଥ ବ୍ରିଟିଶ ଶାସକଙ୍କ ନିକଟରେ ଓଡ଼ିଆ ଜାତିର ଦୁଃଖ, ଅଭାବ ଅସୁବିଧା ବିଷୟ ଉପସ୍ଥାପନ କରିବା ସଙ୍ଗେ ସଙ୍ଗେ ଜନଜାଗରଣସୃଷ୍ଟି କରିବାରେ 'ସମ୍ବାଦ ବାହିକା' ମୁଖ୍ୟ ଭୂମିକା ଗ୍ରହଣ କରିଥିଲା ।

### ସାହିତ୍ୟ-ପତ୍ରିକା ପ୍ରକାଶନ :—

ସମସାମୟିକ ପଡ଼ୋଶୀ ଭାଷାଭାଷୀ ସାହିତ୍ୟ ସହିତ ଓଡ଼ିଆ ସାହିତ୍ୟକୁ ସମକକ୍ଷ କରିବା ନିମନ୍ତେ ଓଡ଼ିଆ ଭାଷାରେ ଗୋଟିଏ ସାହିତ୍ୟ ପତ୍ରିକା ଯେ ଏକାନ୍ତ ଆବଶ୍ୟକ, ଫକୀର ମୋହନ ତାହା ମର୍ମେ ମର୍ମେ ଉପଲବ୍ଧି କରିଥିଲେ । ତେଣୁ ସେ ସମ୍ବାଦ ବାହିକା ସହିତ 'ବୋଧଦାୟିନୀ' ନାମକ ଏକ ସାହିତ୍ୟ ପତ୍ରିକା ପ୍ରକାଶ କରିଥିଲେ ଓ ସେଥିରେ ଓଡ଼ିଆ ସାହିତ୍ୟ ସମ୍ବନ୍ଧୀୟ ଉନ୍ନତ ଆଲୋଚନାମାନ ସ୍ଥାନ ଦେଇଥିଲେ ।

### ଆଧୁନିକ ଓଡ଼ିଆ ସାହିତ୍ୟରେ ଯୁଗସ୍ରଷ୍ଟା :—

ଆଧୁନିକ ଓଡ଼ିଆ ସାହିତ୍ୟକୁ ଫକୀର ମୋହନଙ୍କ ଅବଦାନ ବହୁମୁଖୀ । ଗଳ୍ପ, ଉପନ୍ୟାସ, କବିତା, କାବ୍ୟ, ଶିଶୁସାହିତ୍ୟ, ରମ୍ୟରଚନା, ଭ୍ରମଣ ସାହିତ୍ୟ, ଅନୁବାଦ ପ୍ରଭୃତି ବିଭିନ୍ନ ବିଭାଗରେ ଫକୀରମୋହନ ଲେଖନୀ ଚାଳନା କରି ଓଡ଼ିଆ ସାହିତ୍ୟକୁ ଯେପରି ସମୃଦ୍ଧ କରିଯାଇଛନ୍ତି ସେପରି ଦୃଷ୍ଟାନ୍ତ ଓଡ଼ିଆ ସାହିତ୍ୟରେ ସମ୍ପୂର୍ଣ୍ଣ ବିରଳ ।

### ପ୍ରଥମ ସାର୍ଥକ ଗଳ୍ପସ୍ରଷ୍ଟା :—

ସଂଜ୍ଞା ଓ ସମ୍ଭାର ଦୃଷ୍ଟିରୁ କ୍ଷୁଦ୍ର ଗଳ୍ପ କହିଲେ ଯାହା ବୁଝାଯାଏ, ଓଡ଼ିଆ ସାହିତ୍ୟରେ ତାହାର ପ୍ରଥମ ସ୍ରଷ୍ଟା ହେଉଛନ୍ତି ଫକୀର ମୋହନ ସେନାପତି । ଢେଙ୍କାନାଳର ବ୍ରଜନାଥ ବଡ଼ଜେନା ଅଷ୍ଟାଦଶ ଶତାବ୍ଦୀରେ ଓଡ଼ିଆରେ 'ଚତୁର ବିନୋଦ' ନାମରେ ଗଳ୍ପ ଗ୍ରନ୍ଥ ରଚନା କରିଥିଲେ । ମାତ୍ର ବିଷୟବସ୍ତୁ, ଚରିତ୍ର ଚିତ୍ରଣ, ପ୍ରକାଶଭଙ୍ଗୀ, ଭାଷା ବିନ୍ୟାସ ପ୍ରଭୃତି ଦୃଷ୍ଟିରୁ ସେଗୁଡ଼ିକ ଯଥାର୍ଥ ଗଳ୍ପ ପଦବାଚ୍ୟ ନୁହେଁ । ସାମାଜିକ ଜୀବନ ଓ ସମସାମୟିକ ସମସ୍ୟାର ବାସ୍ତବ ରୂପାୟନ ଦ୍ୱାରା ଫକୀର ମୋହନ ଗଳ୍ପକୁ ରସମୟ ଓ ହୃଦୟଗ୍ରାହୀ

କରିପାରିଛନ୍ତି । ତାଙ୍କ ପରେ ବହୁ ସାର୍ଥକ ଓଡ଼ିଆ ଗାଳ୍ପିକ ଗଳ୍ପସାହିତ୍ୟକୁ ସମୃଦ୍ଧ କରିଯାଇଛନ୍ତି ସତ କିନ୍ତୁ ଫକୀରମୋହନ ଏପର୍ଯ୍ୟନ୍ତ ଅନତିକ୍ରମ୍ୟ ହୋଇ ରହିଛନ୍ତି ।

## ଅପ୍ରତିଦ୍ୱନ୍ଦୀ ଓଡ଼ିଆ ଔପନ୍ୟାସିକ :—

ଆଧୁନିକ ଓଡ଼ିଆ, ଉପନ୍ୟାସ କ୍ଷେତ୍ରରେ ଫକୀର ମୋହନ ହେଉଛନ୍ତି ଅପ୍ରତିଦ୍ୱନ୍ଦୀ ସ୍ରଷ୍ଟା । ତାଙ୍କ ରଚିତ 'ଛ' ମାଣ ଆଠ ଗୁଣ୍ଠ' ଅତୀବ ଜନପ୍ରିୟ । ଇଂରାଜୀ ଓ ଭାରତର ଅନ୍ୟାନ୍ୟ ପ୍ରାନ୍ତୀୟ ଭାଷାରେ ଏହି ଉପନ୍ୟାସଟି ଅନୂଦିତ ହୋଇ ଭାରତୀୟ କଥା ସାହିତ୍ୟରେ ତାଙ୍କୁ ସର୍ବୋଚ୍ଚ ସମ୍ମାନ ମିଳିଛି । ଭାରତୀୟ ସାହିତ୍ୟର ପ୍ରଖ୍ୟାତ ତୁଳନାତ୍ମକ ସମୀକ୍ଷକ ସ୍ୱର୍ଗତ କା.ନା. ସୁବ୍ରମନ୍ୟମ୍ ଫକୀର ମୋହନଙ୍କ କଥା ସାହିତ୍ୟର ଭୂୟସୀ ପ୍ରଶଂସା କରି ଲେଖିଛନ୍ତି — "In this task of re-evaluation, if it is to be done effectively, the Indian critic will find that Phakir Mohan Senapati occupies a central place. For, he had little to unlearn, and future practitioners of the novel in India have to learn much from him – things of a purely literary, salutary kind."

## ଭାରତୀୟ ଜନଜୀବନର ପ୍ରଥମ କଥାକାର :—

ଫକୀରମୋହନଙ୍କ ପୂର୍ବରୁ କୌଣସି ଭାରତୀୟ କଥାକାର ଶୋଷିତ, ନିଷ୍ପେଷିତ, ନିର୍ଯ୍ୟାତିତ ଜନ ଜୀବନର କରୁଣ ଗାଥା ନିଜ କଥା ସାହିତ୍ୟରେ ରୂପ ଦେଇନାହାନ୍ତି । ଛ'ମାଣ ଆଠଗୁଣ୍ଠରେ ଦରିଦ୍ର ସରଳ ତନ୍ତୀ ଦମ୍ପତି ସାରିଆ-ଭଗିଆକୁ କଠୋର ନିର୍ଯ୍ୟାତନା ଦେଇ ରାମଚନ୍ଦ୍ର ମଙ୍ଗରାଜ ଯେପରି ସେମାନଙ୍କ ଛ'ମାଣ ଆଠଗୁଣ୍ଠ କରାୟତ୍ତ କରିଛି ତାହାର ଲୋମହର୍ଷଣକାରୀ ଚିତ୍ର ପ୍ରଦାନ କରି ଫକୀରମୋହନ ବିଦେଶୀ ଶାସନରେ ଦରିଦ୍ର ଭାରତୀୟଙ୍କ ଅକଥାନୀୟ ନିର୍ଯ୍ୟାତନାକୁ ଉନ୍ମୋଚନ କରିଛନ୍ତି, ତେଣୁ ସେ ଯଥାର୍ଥରେ ଆଧୁନିକ ଭାରତୀୟ କଥା ସାହିତ୍ୟରେ କଥାସମ୍ରାଟ ।

## ପ୍ରାଚୀନ ଭାରୀତୀୟ ମୂଲ୍ୟବୋଧର ବଳିଷ୍ଠ ଉଦ୍‌ଗାତା :—

ସାହିତ୍ୟ-ସୃଷ୍ଟି ମୂଳରେ ଫକୀରମୋହନଙ୍କ ନିର୍ଦ୍ଦିଷ୍ଟ ଆଭିମୁଖ୍ୟ ବିଦ୍ୟମାନ । ତାଙ୍କ ରଚିତ ସମସ୍ତ ଗଳ୍ପ, ଉପନ୍ୟାସ, କାବ୍ୟ କବିତା, ରମ୍ୟ ରଚନା ଇତ୍ୟାଦିରେ ଅନ୍ତଃସଲୀଳା ଫଲଗୁଧାରା ପରି ପ୍ରାଚୀନ ଭାରତୀୟ ମୂଲ୍ୟବୋଧର ଏକ ପବିତ୍ର ଭାବଧାରା ପ୍ରବାହିତ । ସତ୍ୟ ତଥା ଧର୍ମ ପ୍ରତି

ସଚେ଼ତନତା ବୃଦ୍ଧି କରିବା ମିଥ୍ୟା ଅନ୍ୟାୟ ଅଧର୍ମ- ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବା, ସ୍ୱଦେଶ ପ୍ରୀତି ଜାଗ୍ରତ କରିବା ବିଦେଶୀ ଶାସକଙ୍କ ଶୋଷଣ ବିରୁଦ୍ଧରେ ଭାରୀତୀୟଙ୍କୁ ସଜାଗ କରାଇବା, ବହୁଧର୍ମ ଅଧ୍ୟୁଷିତ ଭାରତରେ ସାମ୍ପ୍ରଦାୟିକ ସଦ୍‌ଭାବ ପ୍ରତିଷ୍ଠା ପାଇଁ ଆବେଦନ କରିବା ହେଉଛି ଫକୀର ମୋହନଙ୍କ ସାରସ୍ୱତ ସୃଷ୍ଟିର ଅନ୍ତର୍ନିହିତ ଉଦ୍ଦେଶ୍ୟ । ଧର୍ମ ନିରପେକ୍ଷ ମାନବଧର୍ମ ହେଉଛି ଭାରତୀୟ ସଂସ୍କୃତିର ମୌଳିକ ଆଦର୍ଶ । ମୁନି, ଋଷି, ପଣ୍ଡିତଙ୍କ ଦ୍ୱାରା ପ୍ରଖ୍ୟାପିତ ଭାରତୀୟ ସନାତନ ଧର୍ମର ଏହି ମୌଳିକ ଆଦର୍ଶକୁ ନିଜ ରଚ଼ନାବଳୀରେ ରୂପ ଦେଇ ଫକୀର ମୋହନ ଭାଷା, ସ୍ଥାନ ଓ ସମୟର ସୀମାକୁ ଅତିକ୍ରମ କରି ଯାଇଛନ୍ତି । ଫକୀର ମୋହନଙ୍କ ଜୀବନୀ ଓ କୃତିତ୍ୱ ଉପରେ ଗବେଷଣା କରି ପି.ଏଚ୍.ଡି. ପାଇଥିବା ଲଣ୍ଡନ ବିଶ୍ୱବିଦ୍ୟାଳୟର ଅବସରପ୍ରାପ୍ତ ଓଡ଼ିଆ ଅଧ୍ୟାପକ Dr. J. V. Boulton ଏହି ମହାନ୍ ତତ୍ତ୍ୱ ଉପରେ ଆଲୋକପାତ କରି ଉକ୍ତ ନିବନ୍ଧରେ ଲେଖିଛନ୍ତି — "x x essentially Phakir Mohan had but one life-long aim; the translation of the value system of ancient India into Oriya from Sanskrit, either literally as in his Mahabharata, Ramayana and Upanishadas or metaphorically as in his prose-fiction."

## ବ୍ୟାସକବି ଓ ଗୀତିକବି :—

ଫକୀର ମୋହନ ବ୍ୟାସକବି ଭାବେ ପରିଚ଼ିତ । କାରଣ ବ୍ୟାସଦେବଙ୍କ ରଚ଼ିତ ସଂସ୍କୃତ ମହାଭାରତକୁ ସରଳ ଓଡିଆ ଭାଷାରେ ସେ ଅନୁବାଦ କରିଥିଲେ । ବାଲ୍ମୀକିଙ୍କ ସଂସ୍କୃତ ରାମାୟଣକୁ ମଧ୍ୟ ଓଡ଼ିଆରେ ଅନୁବାଦ କରି ସେ ଯଶସ୍ୱୀ ହୋଇଥିଲେ । ଏତଦ୍ ବ୍ୟତୀତ ସେ ବହୁ ଗୀତି କବିତା ରଚ଼ନା କରି କବି ଭାବେ ନିଜ ପାରଦର୍ଶିତା ପ୍ରଦର୍ଶନ କରିଛନ୍ତି । 'ବୌଦ୍ଧାବତାର' କାବ୍ୟରେ ତାଙ୍କର ପାଣ୍ଡିତ୍ୟ ଓ କବିତ୍ୱର ଚ଼ମତ୍କାର ସମନ୍ୱୟ ଘଟିଛି ।

## ଆଧୁନିକ ଓଡ଼ିଆ ଭାଷାର ଜନକ :—

କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ, ଦୀନକୃଷ୍ଣ, ଅଭିମନ୍ୟୁ ସାମନ୍ତସିଂହାର, କବିସୂର୍ଯ୍ୟ ବଳଦେବ ରଥ ପ୍ରଭୃତି କବିମାନେ ଭାଷାର ଠାଣୀ, ଅଳଙ୍କାରର ଐଶ୍ୱର୍ଯ୍ୟ, ରସର ମାଧୁରିମା ପଦବିନ୍ୟାସର ଲାଳିତ୍ୟ ଭରି ଦେଇ ଓଡ଼ିଆ କାବ୍ୟରମଣୀକୁ ଯେପରି ଅଲୌକିକ ସୌନ୍ଦର୍ଯ୍ୟରେ ବିମଣ୍ଡିତ କରିଯାଇଛନ୍ତି ତାହାର ପଟାନ୍ତର କୌଣସି ଭାରୀତୀୟ ପ୍ରାନ୍ତୀୟ ସାହିତ୍ୟରେ ନାହିଁ । ଏପରିକି

ସ୍ଥଳେ ସ୍ଥଳେ ଏମାନେ ସଂସ୍କୃତ ରଚ଼ନାକୁ ମଧ୍ୟ ଅତିକ୍ରମ କରି ଯାଇଛନ୍ତି । ଅଣ-ଓଡ଼ିଆ ଆଲୋଚ଼କ ମାନଙ୍କ ଦ୍ୱାରା ପ୍ରଭାବିତ ହୋଇ ତଥାକଥିତ ଆଧୁନିକ ଓଡ଼ିଆ ପାଠକମାନେ ଏହି ରୀତିଯୁଗୀୟ କାବ୍ୟ ପ୍ରତି ନାସିକା କୁଞ୍ଚନ କରିଥିଲେ । ସେତେବେଳେ ବିଦେଶୀ ଶାସନ ଓ ବିଦେଶୀ ଭାଷାର ସଂସ୍ପର୍ଶରେ ଆସି ଭାରତରନ୍ତୀୟ ସାହିତ୍ୟରେ ବିରାଟ ପରିବର୍ତ୍ତନ ସଂଘିଟିତ ହେଉଥାଏ । ଏହି ସମୟରେ ସ୍ରଷ୍ଟା ଫକୀରମୋହନଙ୍କ ଅବଦାନକୁ ଓଡ଼ିଆ ଜାତି କସ୍ମିନକାଳେ ଭୁଲି ପାରିବନାହିଁ । ଓଡ଼ିଆ କାବ୍ୟ ଅଶ୍ଳୀଳ, କୋଣାର୍କ ପ୍ରଭୃତି ମନ୍ଦିରର ଶିଳ୍ପକଳାକୁ ଅଶ୍ଳୀଳ, ଓଡ଼ିଆ ଗୋଟିଏ ସ୍ୱତନ୍ତ୍ର ଭାଷା ନୁହେଁ, ବଙ୍ଗଳା ଭାଷାର ଉପଭାଷା ଇତ୍ୟାଦି କୁତ୍ସାରଟା କରାଯାଇ ଓଡ଼ିଆ ଭାଷା ଏବଂ ଓଡ଼ିଆ ସଂସ୍କୃତିକୁ ସମୂଳେ ନଷ୍ଟ କରିବା ପାଇଁ ଯେଉଁ ହୀନ ଚ଼କ୍ରାନ୍ତ ଚ଼ାଲିଥିଲା, ଫକୀର ମୋହନଙ୍କ ବ୍ୟବହୃତ ସରଳ ସର୍ବବୋଧ୍ୟ ଓଡ଼ିଆ ଭାଷା ଥିଲା ତାହା ବିରୁଦ୍ଧରେ ଏକ ଅମୋଘ ଅସ୍ତ୍ର । ସେତେବେଳର ପ୍ରଚ଼ଳିତ କଥିତ ଓଡ଼ିଆ ଭାଷାକୁ କଥା ସାହିତ୍ୟରେ ପ୍ରୟୋଗ କରି ପାଠକମାନଙ୍କର ସେ ପ୍ରିୟମାତ୍ର ହୋଇଥିଲେ । ଏଣୁ ତାଙ୍କୁ ଯଥାର୍ଥ ଭାବରେ ଆଧୁନିକ ଓଡ଼ିଆ ଭାଷାର ଜନକ ବୋଲି କୁହାଯାଏ । ଓଡ଼ିଆ ଭାଷାକୁ ସମୃଦ୍ଧ କରିଥିବା, ଅଥଚ଼ ଏପର୍ଯ୍ୟନ୍ତ ଅବହେଳିତ ଥିବା ଓଡ଼ିଶାର ପଲ୍ଲୀ ଅଞ୍ଚଳର ଢଗ, ଢମାଳି, ପ୍ରବଚ଼ନ, ଖନା ବଚ଼ନ, ପହଳିକୁ ନିଜ ସାହିତ୍ୟରେ ସ୍ଥାନ ଦେଇ ଫକୀରମୋହନ ଓଡ଼ିଆ ଭାଷା ଓ ସାହିତ୍ୟରେ ଏକ ଯୁଗାନ୍ତକାରୀ ପରିବର୍ତ୍ତନ ଓ ସଂସ୍କାର ଆଣିଛନ୍ତି ।

**ଜଣେ ଖାଣ୍ଟି ଓଡ଼ିଆ :—**

ଓଡ଼ିଆଭାଷା ସାହିତ୍ୟ ଓ ସଂସ୍କୃତିର ଅଧୋଗତି ଦେଖି ଫକୀର ମୋହନ ମର୍ମେ ମର୍ମେ ଦାରୁଣ ବେଦନା ଅନୁଭବ କରିଛନ୍ତି । 'ଉତ୍କଳ ଭ୍ରମଣ' କବିତାଟି ତାଙ୍କ ଏହି ଅବ୍ୟକ୍ତ ବେଦନାର କରୁଣ ଅଭିବ୍ୟକ୍ତି । ମାତୃଭାଷା ଓ ମାତୃଭୂମି ପ୍ରତି ଓଡ଼ିଆଙ୍କର ଅସମ୍ମାନ ଓ ଅବହେଳା ଲକ୍ଷ୍ୟ କରି ସେ ବିଭିନ୍ନ ରଚ଼ନାରେ ନିଜର କ୍ଷେଦୋକ୍ତି ପ୍ରକାଶ କରିଛନ୍ତି । ନିମ୍ନୋକ୍ତ ପଂକ୍ତିରୁ ତାଙ୍କର ଛିକ ଓଡ଼ିଆ ପ୍ରୀତିର ଦୃଷ୍ଟାନ୍ତ ମିଳିପାରିବ ।

''କେତେ ବାବୁମାନଙ୍କର ଦେଖିଛି ଦୁର୍ଦ୍ଦଶା
ଲାଜମାଡେ କହିବାକୁ ନିଜ ମାତୃଭାଷା ।''

''ଓଡ଼ିଆ ଏଗାରପଣି ବାକି ଇଙ୍ଗରେଜୀ

ଅଦ୍ଭୁତ ଖେଚୁଡ଼ି ଏକ ହୁଏ ମିଶିସାଜି ।''

ଶାଣିତ ବ୍ୟଙ୍ଗ କରି ଅଭିମାନ ଜର୍ଜରିତ ହୃଦୟରେ ଲେଖିଛନ୍ତି —

''ଭଲ ଗୋଟେ ମାତୃଭାଷା କିସ ହେବ ଭାଇ,
ଚଳି ଯାଉଅଛି କାମ ରୁଣ୍ଡାଇ ପୁଣ୍ଡାଇ ।

କୁକୁର କିପାଇଁ ଗୋଟେ ବନାଇବ ଘର
ଘୂଟି ବୁଲେ ବାରମିଶା ଅଇଁଠା ପତର ।''

ସେତେବେଳେ ଓଡ଼ିଶାରେ ଚାକିରୀ, ବ୍ୟବସାୟ ସବୁ କ୍ଷେତ୍ରରେ ଓଡ଼ିଆ ମାନଙ୍କୁ ଯେପରି ବଞ୍ଚିତ କରାଯାଉଥିଲା, ସେହି ଭୟାବହ ଶୋଷଣ-ଚିତ୍ରର ସୂଚନା ଦେଇ ଫକୀର ମୋହନ ଲେଖିଛନ୍ତି —

''ହାକିମ ଓକିଲ ସବୁ ଅଟନ୍ତି ବିଦେଶୀ
ଡାକ ଘର କିରାଣୀଟି ନୁହେଁ କିନ୍ତୁ ଦେଶୀ ।''

ସହସ୍ରାଧିକ ବର୍ଷ ବ୍ୟାପି ଯେଉଁ ଉତ୍କଳ ସାମ୍ରାଜ୍ୟ ଗଙ୍ଗା ଠାରୁ କାବେରୀ ପର୍ଯନ୍ତ ପରିବ୍ୟାପ୍ତ ଥିଲା ସେହି ଉତ୍କଳ ରାଜ୍ୟ ଆଜି ଖଣ୍ଡ ବିଖଣ୍ଡ ହୋଇପଡ଼ିବାରୁ ଫକୀରମୋହନ ଦୁଃଖରେ ମ୍ରିୟମାଣ ହୋଇ ଲେଖିଛନ୍ତି —

ଦକ୍ଷିଣଟା କମାମାନେ ବସିଛନ୍ତି ମାଡ଼ି
ଉତ୍ତରଟା ଗଲାଣି ତ ବଙ୍ଗାଳିଙ୍କ ବାଡ଼ି ।

ପଶ୍ଚିମ ଦିଗର କଥା ବୋଇଲେ ନ ସରେ
ପଡ଼ିଲାଣି ମରହଟା ପଶ୍ଚିମା ଭାଗରେ ।

## ସ୍ୱାଧୀନତା ଆନ୍ଦୋଳନ ଓ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ପୃଷ୍ଠ ଭୂମିରେ ଫକୀରମୋହନଙ୍କ ବ୍ୟକ୍ତିତ୍ୱ :—

ମହାତ୍ମା ଗାନ୍ଧୀ ଭାରତରେ ସ୍ୱାଧୀନତା ଆନ୍ଦୋଳନର ନେତୃତ୍ୱ ନେବାର ବହୁ ପୂର୍ବରୁ ଦେଶଭକ୍ତ ଫକୀର ମୋହନ ତାଙ୍କ ରଚନା-ବଳୀରେ ବ୍ରିଟିଶ ଶାସନ ବିରୁଦ୍ଧରେ ଯେଉଁ ଶକ୍ତିଶାଳୀ ତୀର୍ଯ୍ୟକ ଆହ୍ୱାନ ଜଣାଇଥିଲେ ତାହା

ସ୍ୱାଧୀନତା ଆନ୍ଦୋଳନ, ପାଇଁ ଭାରତୀୟମାନଙ୍କୁ ବଳିଷ୍ଠ ଭିତ୍ତିଭୂମି ଯୋଗାଇଥିଲା । 'ଉତ୍କଳଭ୍ରମି' ରେ ସେ ଲେଖିଛନ୍ତି —

''ଉତ୍କଳ ବସନେ, ଆବୃତ ଯତନେ, ଥିଲେ ୟୁରୋପ ଲଳନା,
ଏବେ ତୋ ସନ୍ତାନେ, ରହିଛନ୍ତି ଧ୍ୟାନେ, ମଞ୍ଚେଷ୍ଟରୁ ଖଣ୍ଡେକନା ''।

''ଓଳି ତଳେ ଲୁଣ କୋଟିଏ ମହଣ ଥାଉଁ ମୋ କଥା ଶୁଣ,
ବୋଲଲେ କି ହେବ, ଖାଇବାକୁ ହେବ, ଲିଭରପୁଲରୁ ଲୁଣ !''

ବ୍ରିଟିଶ ଶାସକଙ୍କ ଦ୍ୱାରା ଓଡ଼ିଆ ଅର୍ଥନୀତିର ଏପରି ବୀଭତ୍ସ ଶୋଷଣର ଚିତ୍ର ଓଡ଼ିଆ ସାହିତ୍ୟରେ ବିରଳ । ସେହିପରି ତାଙ୍କର ପ୍ରସିଦ୍ଧ ଉପନ୍ୟାସ 'ଛ'ମାଣ ଆଠଗୁଣ୍ଠ' ରେ ୟୁରୋପୀୟ ପାଣିକୁଆମାନଙ୍କ ପ୍ରତି ଭରତୀୟମାନଙ୍କୁ ସାବଧାନ କରାଇଦେଇ ଲେଖିଛନ୍ତି - ''ହେ ହିନ୍ଦୁଧର୍ମୀ ବଗମାନେ ଇଂରେଜ ପାଣିକାଉଙ୍କୁ ଦେଖ, କେଉଁ ଦେଶରୁ ଖାଲି ପକେଟରେ ଉଡିଆସି ଚେଙ୍ଗବେଙ୍ଗ ଗଡ଼ିଶାରେ ପେଟ ପୂରାଇ ଚାଲିଗଲେ । ଦୀଘି କୂଳର ବରଗଛରେ ତୁମ୍ଭମାନଙ୍କର ବସା, ଦିନସାରା ପାଣି ଚକଟି ଚକଟି ଦଣ୍ଡେଇପିଲା, କେରାଣ୍ଡିପିଲାରୁ ଅଧିକ କିଛି ପାଉନାହଁ । ଜୀବନ ସଂଗ୍ରାମ କାଳ ଉପସ୍ଥିତ । ଏମିକି ଆହୁରି ପଲପଲ ପାଣିକାଉ ଆସି ବେଙ୍ଗଚେଙ୍ଗ ସବୁ ବିହନେଇଯିବେ । ତୁମ୍ଭେମାନେ ବିଦେଶକୁ ଯାଇ ସମୁଦ୍ର ପହଁରି ନ ଶିଖିଲେ ଆଉ ରକ୍ଷା ନାହିଁ ।'' ଶୋଷକ-ବ୍ରିଟିଶ ସରକାର ବିରୁଦ୍ଧରେ ସଂଗ୍ରାମ କରିବା ପାଇଁ ପରାଧୀନ ଭାରତୀୟମାନଙ୍କୁ ଏପରି ପ୍ରତ୍ୟକ୍ଷ ଆହ୍ୱାନ ଜଣାଇଥିବାର ଦୃଷ୍ଟାନ୍ତ ସମକାଳୀନ ଭାରତୀୟ ସାହିତ୍ୟରେ ଥିବ କି ନାହିଁ ସନ୍ଦେହ ।

ଓଡ଼ିଆଭଷୀ ଅଞ୍ଚଳକୁ ନେଇ ଏକ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ନିମନ୍ତେ ସାହିତ୍ୟରେ ଓ କର୍ମରେ ଫକୀରମୋହନ ଯେଉଁ ଉଦ୍ୟମ କରିଥିଲେ ତାହା ଅବିସ୍ମରଣୀୟ । ୧୯୦୩ ମସିହାରେ ଗଠିତ ହୋଇଥିବା ''ଉତ୍କଳ ସମ୍ମିଳନୀ'' କୁ ସେ କାୟମନୋବାକ୍ୟରେ ସାହାଯ୍ୟ କରୁଥିଲେ । ୧୯୧୭ ମସିହାରେ ଏହି 'ଉତ୍କଳ ସମ୍ମିଳନୀ' ର ସେ ସଭାପତି ରୂପେ ନିର୍ବାଚିତ ହୋଇଥିଲେ ।

ସବୁଦୃଷ୍ଟିରୁ ବିଚାର କଲେ ଫକୀରମୋହନ ହେଉଛନ୍ତି ଏକ ଅନନ୍ୟ ପ୍ରତିଭା । ନିଜର ସାଂଗଠନିକ ଦକ୍ଷତା ବଳରେ ସମସ୍ତ ଚକ୍ରାନ୍ତକୁ ପ୍ରତିହତ କରି ସେ ଓଡ଼ିଆ ଭାଷାକୁ ଆସନ୍ନ ମୃତ୍ୟୁରୁ ରକ୍ଷା କରିଥିଲେ । ଓଡ଼ିଶାର ବିଭିନ୍ନ

ଗଡ଼ଜାତ ରାଜ୍ୟରେ ଦେଓ୍ବାନ ରୂପେ କାର୍ଯ୍ୟ କରି ଯେଉଁ ଦକ୍ଷତା ଓ ପ୍ରତ୍ୟୁତ୍ପନ୍ନମତିତା ପ୍ରଦର୍ଶନ କରିଯାଇଛନ୍ତି ତାହା ଭାରତୀୟ ପ୍ରଶାସନ-ଇତିହାସରେ ସମ୍ପୂର୍ଣ୍ଣ ବିରଳ । ଗଳ୍ପ ଓ ଉପନ୍ୟାସରେ ଅପୂର୍ବ କୃତିତ୍ୱ ଯୋଗୁଁ ସେ ଆଧୁନିକ ଭାରତୀୟ କଥା-ସାହିତ୍ୟର ଅଦ୍ୱିତୀୟ ସ୍ରଷ୍ଟା ଓ ଦିଗ୍‌ଦର୍ଶକ ରୂପେ ସ୍ୱୀକୃତ । ବାଲେଶ୍ୱର ସରକାରୀ କଲେଜକୁ ତାଙ୍କ ନାମରେ ନାମିତ କରିବା ବ୍ୟତୀତ ଓଡ଼ିଆ ଜାତି ଏହି ପ୍ରାତଃସ୍ମରଣୀୟ ମହାନ ସାରସ୍ୱତ ପୁରୁଷଙ୍କ ସ୍ମୃତି ରକ୍ଷା ପାଇଁ କିଛି କାଳଜୟୀ କୀର୍ତ୍ତି ସ୍ଥାପନ କରିନାହିଁ । ତାଙ୍କ ଜନ୍ମଭୂମି ଓ ସାଧନାଭୂମି ବାଲେଶ୍ୱରରେ ତାଙ୍କ ନାମରେ ଏକ ବିଶ୍ୱବିଦ୍ୟାଳୟ ସ୍ଥାପିତ ହୋଇପାରିଲେ ତାଙ୍କ ପବିତ୍ର ସ୍ମୃତି ପ୍ରତି ତାହା ହେବ ସର୍ବଶ୍ରେଷ୍ଠଶ୍ରଦ୍ଧାଞ୍ଜଳି ।

ଗୋପାଳଗାଁ

ତା୨୫।୬।୯୫ ବାଲେଶ୍ୱର - ୭୫୬ ୦୦୧

ଓଡ଼ିଶା, ଭାରତ

# ଡକ୍ଟର ପ୍ରହ୍ଲାଦ ଚରଣ ମହାନ୍ତିଙ୍କ ସଂକ୍ଷିପ୍ତ ପରିଚୟ



ବାଲେଶ୍ୱର ଜିଲ୍ଲା, ସୋରଥାନା, ପୂର୍ବତନ ମଙ୍ଗଳପୁର ଜିଲ୍ଲା ଗଡ଼ସାହିରେ ୧୯୩୬ ମସିହା ଫେବୃୟାରୀ ୨୪ ତାରିଖରେ ଜନ୍ମ । ବର୍ତ୍ତମାନ ବାଲେଶ୍ୱର ସହରସ୍ଥ ଗୋପାଳଗାଁର ସ୍ଥାୟୀ ନିବାସୀ ।

ବାଲେଶ୍ୱର ଜିଲ୍ଲା ସ୍କୁଲରୁ ମେଟ୍ରିକ, ଫକୀରମୋହନ କଲେଜର ଆଇ.ଏସ୍‌ସି., ବି.ଏ. ଓ ରେଭେନ୍ସା କଲେଜରୁ ଓଡ଼ିଆରେ ଏମ୍.ଏ. ପାଶ୍ କରି ୧୯୫୯ ମସିହାରେ ଢେଙ୍କାନାଳ କଲେଜରେ ଅଧ୍ୟାପକ ଓ ପରେ ଉପାଧ୍ୟକ୍ଷ,ଭାରପ୍ରାପ୍ତ ଅଧ୍ୟକ୍ଷ ରୂପେ ନିଯୁକ୍ତ । ବାଲେଶ୍ୱରରୁ ଫକୀରମୋହନ କଲେଜ, ଖଲ୍ଲିକୋଟ କଲେଜ, ବ୍ରହ୍ମପୁର, ଭଦ୍ରକ କଲେଜ ପ୍ରଭୃତିରେ ଅଧ୍ୟାପକ, ପ୍ରାଧ୍ୟାପକ ବିଭାଗୀୟ ମୁଖ୍ୟ, ଅସ୍ଥାୟୀ ଅଧ୍ୟକ୍ଷ ଦାୟିତ୍ୱରେ ଅବସ୍ଥାପିତ । ୧୯୯୪ ମସିହା ଫେବୃୟାରୀ ୨୮ ତାରିଖରେ ଫକୀରମୋହନ କଲେଜର ଓଡ଼ିଆ ପ୍ରାଧ୍ୟାପକ ଓ ବିଭାଗୀୟ ମୁଖ୍ୟ ପଦବୀରୁ ଅବସର ଗ୍ରହଣ ।

ଜଣେ କବି, ଗାଳ୍ପିକ, ପ୍ରାବନ୍ଧିକ, ସମାଲୋଚକ, ରମ୍ୟରଚକ, ଶିଶୁ ଲେଖକ ଓ ବାଗ୍ମୀ ରୂପେ ଓଡ଼ିଶାରେ ପରିଚିତ । ତାଙ୍କ ରଚିତ ଗ୍ରନ୍ଥଗୁଡ଼ିକ ପାଠକ ମହଲରେ ଆଦୃତ । ତାଙ୍କର ପ୍ରଖ୍ୟାତ ଆଲୋଚନା-ପୁସ୍ତକ "ଓଡ଼ିଆ-ଯାତ୍ରା ଓ ଲୋକନାଟକ" ର ଇଂରାଜୀ ସମୀକ୍ଷା ଆମେରିକାର ପତ୍ରିକାରେ ପ୍ରକାଶିତ । ଆନ୍ତର୍ଜାତିକ ଓ ନିଖିଳ ଭାରତ ଆଲୋଚନା ଚକ୍ରରେ ସେ ସ୍ୱରଚିତ ଇଂରାଜୀ ପ୍ରବନ୍ଧ ଉପସ୍ଥାପନ କରିବା ଓ ସେଗୁଡ଼ିକ ସଂକଳନରେ ସ୍ଥାନ ପାଇବା, ନିଶ୍ଚିତ ଭାବେ ତାଙ୍କ ଅମ୍ଳାନ ପ୍ରତିଭାର ପରିଚୟ ଦିଏ ।

ସେ ବହୁ ସାହିତ୍ୟାନୁଷ୍ଠାନ, ଶିକ୍ଷାନୁଷ୍ଠାନ ଓ ସାଂସ୍କୃତିକ ଅନୁଷ୍ଠାନର ପ୍ରତିଷ୍ଠାତା । ବାଲେଶ୍ୱରରେ ବିଶ୍ୱବିଦ୍ୟାଳୟ ସ୍ଥାପନ ପାଇଁ ତାଙ୍କର ନିଷ୍ଠା 'ଆନ୍ତରିକତା ଓ ଉଦ୍ୟମ ଅତୀବ ପ୍ରଶଂସନୀୟ' ବାଲେଶ୍ୱର ଶିକ୍ଷା ପରିଷଦ୍‌ର ସେ ହେଉଛନ୍ତି ପ୍ରଥମ ଆବାହକ ତଥା ସମ୍ପାଦକ । ବର୍ତ୍ତମାନ ବିଶ୍ୱବିଦ୍ୟାଳୟ କ୍ରିୟାନୁଷ୍ଠାନ କମିଟୀ ଓ ଶିକ୍ଷା ପରିଷଦର ଯଥାକ୍ରମେ ସମ୍ପାଦକ ଓ ଯୁଗ୍ମ ସଂପାଦକ ରୂପେ କାର୍ଯ୍ୟରତ । ତାଙ୍କ ସମୟରେ ଆମେରିକାର ଓଡ଼ିଆ ସଂଗଠନ (ଓସା) ବାଲେଶ୍ୱରରେ ଫକୀରମୋହନ ବିଶ୍ୱବିଦ୍ୟାଳୟ ସ୍ଥାପନ ପାଇଁ ପ୍ରସ୍ତାବ ଗ୍ରହଣ କରିବା ଓ ବଦାନ୍ୟ ଓଡ଼ିଆ ଭାଇ ଭଉଣୀଙ୍କ ଠାରୁ ଏଥିପାଇଁ ଆର୍ଥିକ ସାହାଯ୍ୟ ସଂଗ୍ରହ ନିମନ୍ତେ ଓସାର ସଭାପତି ଡ଼ଃ ଏସ୍. କେ. ଦାଶଙ୍କ ଆମନ୍ତ୍ରଣ ରକ୍ଷା କରି ତାଙ୍କ ସମେତ ସଂପାଦକ ଶ୍ରୀ ରବୀନ୍ଦ୍ର ମୋହନ ଦାସ ଓ କୋଷାଧ୍ୟକ୍ଷ ଡ଼ାଃ ହରିଶ୍ଚନ୍ଦ୍ର ଜେନା, ଆମେରିକାସ୍ଥ ମିନିଆପଲିସରେ ଜୁଲାଇ ୧।୨।୩, ୧୯୯୫ ରେ ଅନୁଷ୍ଠିତ ହେଉଥିବା ଓସାର ୨୬ତମ ବାର୍ଷିକ ଅଧିବେଶନରେ ଯୋଗ ଦେଉଥିବା ଏକ ଐତିହାସିକ ଘଟଣା ।